କେତେ ଶାସ୍ତି । ୭୭ । ଶ୍ରୀକୃଷ୍ଣଙ୍କୁ ସ୍ୱଧା ଏହା କହୁବାର ବେଳେ ॥ ଗରୁଡ ମିଳିଲେ ଯାଇଁ କବାଟର ଦ୍ୱାରେ । ୭୮ । ଆକ୍ଷିରୁଦ୍ଧ ପଡ ଥିଲ ଇନ୍ଦ୍ରସେଣା ମୂର୍ଚ୍ଛା । ହରଷ ପାଇଣ ଚହିଁ ଉଠିଲ ଗରୁଡ଼ ॥ ଇନ୍ଦ୍ରସେଣା ମୁଖ ଚହିଁ ଗୋପପୁରେ ବୋଇ । ଧୀର ଧୀର ହୋଇ ବାରୁ ପାରୁରୁ ନ ଚଲ । ୮୦ । ଥୋକାଏ ବୋଇଲେ ଚଲ ନ ପାରିଲେ ଅବା । ଡେଣାଏଁ ଡେଣାଏଁ ଧରି ଘୋଷଡ଼ାଇ ନେବା ॥ ଏତେ ବୋଲି ଗରୁଡ଼ଙ୍କୁ ଧରି ବ୍ରଜପୋଏ । ଘୋଷାଡ଼ିଣ ଆଣିଲେ କବାଟଦ୍ୱାର ଯାଏ । ୮୧ । ନନ୍ଦରାଜା ବୋଇଲେ ହୋ ବୁଡ଼ିଥିଲା ବେଳା । ମଲା ବୋଲି ଜାଣିଥିଲୁ ଆମ୍ଭ ଝିଅ ଶଳା । ୮୨ । ଏବେ ସେ ପାଇଲା ପ୍ରାଣ ଯଶୋଦାର ଝିଅ । ଘୋଷଡ଼ାଇ ଆଣିଲେ ତହିଁକି ଦୋଷନାହିଁ । ୮୩ । କି ବୁଦ୍ଧି କରିବା ଏବେ କହିବା ଆସ । ଭୂତ ଯୋଗୁଁ ଗୋପପୁର ଯାଉଅଛି ନାଶ । ୮୪ । ସବୁଙ୍କୁ ଗିଳିବ ଏଥି ନ ରଖିବ କିଛି । ସ୍ୱଧାଙ୍କୁ ଖାଇଣ ଭୂତ ଅଣ୍ଟା କଳାଇଛି । ୮୫ । କେ ବୋଲଇ ସମସ୍ତେ ମୋହର ବୋଲ କର । ଘଡେପୁର କରି ଚଲ ବେଢ଼ିଥିବା ଘର । । ୮୬ । କେ ବୋଲଇ ଭୂତକୁ ତେମନ୍ତ ନୋହେ ଗଣ୍ଡି । ଇନ୍ଦ୍ରସେଣା ଘରଦ୍ୱାର ପକାଇବା ଖଣ୍ଡି । ୮୭ । କେ ବୋଲଇ ଘର ଦ୍ୱାର ନ କରିବା ନାଶ । ପିଢ଼ା କଣା କରି ସର୍ବେ ଅନାଇବା ଆସ । ୮୮ । କେ ବୋଲଇ ପିଢ଼ା ପରେ ଉଠିଥିବା ଭୂଲ । ହସ୍ତ ବଢ଼ାଇଣ ଯେବେ ବାଳ ଧରି ନେଲା । ୮୯ । କେ ବୋଲଇ ସମସ୍ତେହେଁ ରହିବା ଉହାଡ଼ି । କବାଟ ଭାଙ୍ଗିବା ଅମ୍ଭେ କେନ୍ଦୁବାଡ଼ି ମାରି । ୯୦ । ଏସନ କମ୍ପୁଛନ୍ତି ଗୋପାଳ ସମସ୍ତ । ଲହୁଡି ବୁଲାଇଣ ହୋଇଲେ ମହାମତ୍ତ । ୯୧ । କେ ବୋଲଇ ଧାଆଁରେ ଭୂତକୁ ବେଗେ ମାର । ନ ମଲା ବେଳକୁ ପଛେ ପୋଡ଼ିଦେବା ଘର । ୯୨ । ଏକଇ ପଛରେ ବେଢ଼ି ଅନେକ ରହିଲେ । ଘଡେପୁର କରି ଏକ କ୍ଷଣକେ ବେଢ଼ିଲେ । ୯୩ । କେ ବୋଲଇ ଗୋପପୁର ଭୂତ କଲା ଉଜା ।

ଲଉଡ଼ ବୁଲାଇ କେ ଶରକୁ ମାରେ ଠେଙ୍ଗା । ୯୪ । ଧାଇଁ ଧାଇଁ ଉହଲେ ଗୋପାଳେ ସବୁ ପଡ଼ି । କଲିଂଆର କବାଟକୁ ମାରେ କେନ୍ଦୁବାଡ଼ି । ୯୫ । ତାହା ଦେଖି ସାଥିକାକୁ ବୋଲେ ପଦ୍ମଆଖି । ଶଉଡ଼ଙ୍କ ଗୋଳମାଳ ଦେଖ ପ୍ରାଣ ସଖି । ୯୬ । ଏହିକ୍ଷଣି ସାଥିକା ଗର୍ଜ୍ଜିବ ଯେବେ ମୁହିଁ । ଗୋପ ଛାଡ଼ି ପଳାଇବେ ଦେଖିଥିବୁ ରହି । ୯୭ । ଶତେପୁର କରି ଦେଖ ବସିଛନ୍ତି ବେଢ଼ି । ତୋହର ବୋଲରେ ସ୍ୱଧା ଦେବ ଯିହିରଡ଼ି । ୯୮ । ସାଥିକା ବୋଇଲେ ତୁମ୍ଭେ ଶୁଣ ନାସ୍ୱପୂର୍ଣ । ଗରବଗଞ୍ଜନବାନା ତୁମ୍ଭେ ଯିନା ଜାଣ । ୯୯ । ଏତେ ବୋଲି ସାଥିକା ଉହିଲେ ଭୁଜ ହୋଇ । କାଯୃା ବସ୍ତାରିଲେ ପ୍ରଭୁ ବ୍ରହ୍ମାଣ୍ଡଗୋସାଇଁ । ୧୦୦ । ମହାବପୃଙ୍କର ରୂପ ଧରି ମହାବାହୁ । ଫୁତ୍କାର କରିଣ ଗର୍ଜ୍ଜନ କଲେ ଯହୁଁ । ୧୦୧ । ଲହ ଲହ ଜିହ୍ୱା ପ୍ରଭୁ ଦନ୍ତପାନ୍ତି ଭିଡ଼ି । ବଜ୍ରନି ଛଡ଼ିଲେ ନାସ୍ୱପୂର୍ଣ ଯିହିରଡ଼ି । ୧୦୨ । ଘନ ଘନ ଗର୍ଜ୍ଜନ କରନ୍ତି ଘୋଷରବରେ । ଆକାଶ ବ ଗଗଣ ପଡ଼ିଲ ଉଷାଡ଼ଲେ । ୧୦୩ । ଗଙ୍ଗପଡ଼ ମନ୍ଦର ବ ତଳକୁ ପଡ଼ିଲା । ପର୍ବତ ଉପରେ ବ କୁଳିଶ ବରଷିଲା । ୧୦୪ । ସାତସିନ୍ଧୁ ଏକଠେ ଅଇଲା ହବା ଘୋଟି । ନବଖଣ୍ଡମେଦନୀ ବ ପଡ଼ିବ ଲେଉଟି । ୧୦୫ । ପଳାଇ ଯିବାକୁ ବାଟ ନ ପାନ୍ତି ଗୋପାଳେ । ଦଶଦିଗ ଅନ୍ଧାର ହୋଇଲା ତେତେବେଳେ । ୧୦୬ । ଗୋଡ଼ ଥରହର କେହୁ ନ ପାରନ୍ତି ଚଳି । ଘରେ କେହି ପଶିଲେ କବାଟହାର ଢଳି । ୧୦୭ । ଥୋକାଏ ଲୁଚିଲେ ଯାଇଁ ବୃକ୍ଷର ପାର୍ଶ୍ୱରେ । ଭୟରେ ପଶିଲେ କେହି ଯମୁନା ନଦୀରେ । ୧୦୮ । ଆପଣେ ଯେ ନନ୍ଦରାଜା ହବା ହୋଇ ଥିଲେ । ଶ୍ରୀକୃଷ୍ଣ ଗର୍ଜନ ଶୁଣି ଉମତ୍ତ ପଡ଼ିଲେ । ୧୦୯ । ଗୃହଆଡ଼େ ଗୃହାନ୍ତେଣ କେଣେ ଦେଖୁ ନାହିଁ । ପଳାଇ ଆସନ୍ତି ନନ୍ଦ ଧଡ଼ପଡ଼ ହୋଇ । ୧୧୦ । ଜିଜ ପୁରେ ପ୍ରବେଶ ହୋଇଲେ ବ୍ରଜପତି । ଯଶୋଦା ବୋଇଲେ ଏତ ବିପରୀତ ଅତି । ୧୧୧ । ରାଣୀ

ଆଗେ କହନ୍ତି ସ୍ୱଜନ ବଳବନ୍ତ । ମୋତେ ଖାଉଥିଲା ସେ ଧିପଣ୍ଡ-
ଢଳାକୃତ । ୧୨ । ଶ୍ରୀଗୁରୁ ପ୍ରସାଦେ ଯେ ଅଇଲୁଁ ବେଗେ ତରି ।
ଜଗନ୍ନାଥ ରକ୍ଷିଲେ ମଙ୍ଗଳା କଲେ ପାର । ୧୩ । ଯଶୋଦା
ଆଗରେ ନନ୍ଦ କହୁବାର ବେଳେ । ଗୋଟିଏ ଗୋଟିଏ ଅସି
ମିଳିଲେ ଗୋପାଳେ । ୧୪ । ଜଣେ ଜଣେ ଲୁଚିଥିଲେ ବ୍ରଜରେ
ଗୋପାଳ । ସମସ୍ତେ ହୋଇଲେ ଯାଇଁ ନନ୍ଦଦ୍ୱାରେ ଠୁଳ । ୧୫ ।
ମଣ୍ଡଳ ଆକାର ହୋଇ ବସିଲେ ଗୋପାଳେ । ଗୁପତ ସ୍ଥଳେଧି
ପୂଣ କଲେ ଏକାବେଳେ । ୧୬ । ନନ୍ଦସ୍ୱଜା ବୋଇଲେକ ଦଗୁ-
ନାହିଁ ବଲ । ଇନ୍ଦ୍ରଙ୍କର କ୍ରୁଦ୍ଧ ଏ ଗୋପକୁ ହେଲା ଶଲ । ୧୭ ।
ସାଧୁବାକୁ ଖାଇଣ ବସିଲି ସ୍ଥାନମାଡ଼ । ସ୍ଥାନ ମାଡ଼ ରହିଲା ନ
ଯିବ ଆଉ ଛାଡ଼ । ୧୮ । ଉନ୍ଦ୍ରସେଣା ବୋଲେ ମୋତେ ଦଣ୍ଡୁଛ
ଏ ବୃଜି । ସାବଧାନେ ଶୁଣିମା ଗଉଡ଼ ନୃପଲକ୍ଷ୍ମି । ୧୯ । ଅଟ
ଅଣ୍ଡା କଲେ ସେ ନୁହଇ ବଡ଼ ଯଶ । ସ୍ତୁତି କଲେ କୃତ ଅବା
ହୋଇବ ସନ୍ତୋଷ । ୨୦ । ନନ୍ଦସ୍ୱନା ବୋଇଲେ ପଚ୍ଚର ଦୃଢ଼
ଯାଉ । ସ୍ୱଗ ଗଲେ ଯିବା ତାର କୋପ ଶାନ୍ତ ହେଉ ॥ ସଙ୍କୁ
ଗୁହିଁଣ ସେ ବୋଲନ୍ତି ନୃପଥାଇଁ । କନ୍ୟ ହୋଇଣ ସ୍ତୁତି କର-
ବାକ ଯାଇଁ । ୨୨ । ସ୍ତୁତି କଲେ କୃତ ଅବା ହୋଇବ ସନ୍ତୋଷ ।
ଅଣ୍ଡ ଗୋଳ କରିବାରେ ପ୍ରୟୋଜନ ଦ୍ୱଷ । ୨୩ । ଶୁକମୁନି
କହୁଲେ ପରୀକ୍ଷ ନୃପନାହା । ସ୍ୱଧା ମାଧବଙ୍କ କେଳି ପୁଚ୍ଛା କଲ
ଯାହା । ୨୪ । ଏକମନ ହୋଇ ଶୁଣ ଚିତ୍ତ ଶାନ୍ତ ହେଉ ।
କୋଟିଏ ଜନ୍ମର ଯେ ପାତକ କ୍ଷୟ ଯାଉ । ୨୫ । ଯେଉଁ ପାଦ
ଲାଗି ମୋକ୍ଷ ଯାମଳାର୍ଜ୍ଜୁନ । ରଙ୍ଗିମାଚରଣେ ଥାଉ କୃଷ୍ଣର
ଶରଣ । ୨୬ ।

---

## ତୃତୀୟ ଅଧ୍ୟାୟ ।

ଏଥିଅନନ୍ତରେ ଯେ ଶୁଣିମା ନୃପମଣି । ନନ୍ଦ ବସିଥିଲେ ଯେ
ଗଉଡ଼ବୃନ୍ଦ ଘେନି । ୧ । ଉନ୍ଦ୍ରସେଣା କାନ୍ଦୁଅଛୁ ଭୂମିପରେ ପଡ଼ି-

ଆହା ମୋ ପ୍ରାଣବଲ୍ଲଭଙ୍କୁ କେଣେ ଗଲୁ ଛାଡ଼ି । ୨ । ଦ୍ରୌପଦୀ ସୁନ୍ଦରୀ
ଛନ୍ଦପୁରେ ଦେଖା ନାହିଁ । କେତେ ବାନ୍ଧୁଛନ୍ତ ଗୋ ଶରଦଚନ୍ଦ୍ର-
ମୁହିଁ । ୩ । ହିପଣ୍ଡକାଳି ଆକୃତ ନାହିଁ ସେ ଅଇଲା । ମୋର
ପ୍ରାଣର ବଲ୍ଲଭଙ୍କୁ ସୁଧାକୁ ଖାଇଲା । ୪ । ନନ୍ଦରାଜା ବୋଇଲେ
ଗରୁଡ଼ ମୁଖ ଚାହିଁ । ତୁମ୍ଭେମାନେ ତୁଷ୍ଣ ହୋଇ ବସିଲ କପାଇଁ ॥
ଆହୁରି ଅନେକ ଏଥି କରିବ ଅନୀତ । ବେଗେ ଯାଇଁ ଦ୍ୟୂତକୁ
ସମସ୍ତେ କର ସ୍ତୁତି । ୬ । କ୍ଷଣକ ଭିତରେ କୋପ କଲା ଅପ୍ରମିତ ।
ଜାତିଏଁ ଜାଣିଲୁ ଏ ମନୁଷ୍ୟକ୍ରିୟା ଦ୍ୟୂତ । ୭ । ଗୋଳମାଳ କଲେ
ଏ କରିବ ବଡ଼ଶେଷ । ଭଜନ ହୋଇଲେ ଅବା ନ ଘେନିବ
ଦୋଷ ॥ ଏବେ ତୁମ୍ଭେ ସମସ୍ତେହେଁ ସଜମାନ ହୁଅ । ହୀନକାର୍ଯ୍ୟ
ହୋଇଣ ଯେ ସ୍ତୁତିବାକ୍ୟ କହ । ୯ । ତାହା ଶୁଣି ଗରୁଡ଼ ଥୋ-
ଇଲେ ସବୁ ସଜ । ବଳକାର୍ଯ୍ୟ ଲୁଚାଇ ହୋଇଲେ ହୀନ ତେଜ ॥
ପଦ୍ମରୁ ନୂପୁର ଯେ କଟିରୁ ଦବ୍ୟ ଘଣ୍ଟି । ହସ୍ତରୁ ପତାକାମାନ
ପକାଇଲେ କାଟି । ୧୧ । ହୃଦରୁ ପଦକମାନ ପକାଇଲେ ଭାଙ୍ଗି ।
ସୁନାସୂତା କାଢ଼ିଣ ପୁଣ କେ ଦେଲା ଫିଙ୍ଗି । ୧୨ । କାହାର ଅଣ୍ଟାରୁ
ରହି ଓଢ଼ିଥଣୀ କାଢ଼ି । ପଥରେ ଥୋଇଣ କେ ପିନ୍ଧନ୍ତି କେନ୍ଦୁ-
ବାଡ଼ି । ୧୩ । କର୍ଣ୍ଣର କୁଣ୍ଡଳ କେତୁ ପାତେ ମରଦଲେ । ଗଳାରୁ
ମୁକୁତା କାଢ଼ି ବାଲରେ ଯୋଡ଼ିଲେ । ୧୪ । ଲଲାଟପଟ୍ଟରୁ କେ
କାଢ଼ିଲେ ସୁନାଟିକା । କାଛମାନ ପାଲଟି ପିନ୍ଧିଲେ କୁଣ୍ଡାକଚ୍ଛା ॥
ଦେହରେ ପାଉଁଶ ବୋଲି ସମସ୍ତ ଗୋପାଳ । ବାଡ଼ିମାନ ପକାଇ
ମୁକୁଳା କଲେ ବାଳ । ୧୬ । ଗୋପାଳଙ୍କୁ ଚାହିଁଣ ବୋଲନ୍ତି
ନରନାଥ । ସମସ୍ତେ ଦ୍ୟୂତକୁ ବାରୁ ଯୋଡ଼ିଥିବ ହସ୍ତ । ୧୭ । ଯାହାକୁ
ଯେମନ୍ତ ସ୍ତୁତି ତେମନ୍ତ ବୋଲିବ । କରପଦ୍ମ ଯୋଡ଼ି ଯାଇଁ ସମ୍ମୁଖରେ
ହୋଇବ । ୧୮ । ଏତେମତେ ଦ୍ୟୂତ ଯେବେ ଦେବ ତଡ଼ବଡ଼ି ।
ସମସ୍ତେ ପଳାଇ ଯିବା ଗୋପନଗ୍ର ଛାଡ଼ି । ୧୯ । ଏଥନେକ ଦଣ୍ଡର
କରନ୍ତି ଯୋଗ୍ୟାମତେ । ଇନ୍ଦ୍ରସେଣା ଉଆସକୁ ଚଳିଲେ ସମସ୍ତେ ॥

ଦୁଇ କାଖେ ହାତ ଧରି ଦନ୍ତରେ ତୃଣ । ଝୁଣ୍ଟି ଦୂରୁ ଡାକୁଛନ୍ତି ଭୃତରେ ଶରଣ । ୨୧ । ଯେ ହରି ଛମୁକୁ ଯେବେ ଚଳଇ ବଳଥା । ରକ୍ଷିଲେ ରକ୍ଷିବେ ଏକା ଦ୍ୱିପଣ୍ଡକାଳିଆ । ୨୨ । ଗଉଡ଼ମାନେ ସମସ୍ତେ ଏକମୁଖ ହୋଇ । କବାଟ ଦ୍ୱାରରେ ସ୍ତୁତି କରୁଛନ୍ତି ଯାଇଁ । ୨୩ । ଜୟ ଜୟ ଭୂତେଶ୍ୱର କର ପ୍ରତିକାର । ତୁମ୍ଭର ସଙ୍କୁଚା ସିନା ଏ ଗୋପନଗର । ୨୪ । ଆମ୍ଭେ ଛାର ନ ଜାଣୁ ତୁମ୍ଭରେ କଲୁଁ ଦୋଷ । ସକଳସହୁଣି ନାଥ ନ କରନ୍ତୁ ରୋଷ ॥ ଅନନ୍ତକୋଟି ଜୀବ ଯା ପାଦତଳେ ଝୁଣ୍ଟି । କ୍ଷଣକ ଭିତରେ ପାରୁ ଭକ୍ତପୁର ଘୋଟି । ୨୫ । ମହାବଦ୍ୟୁଙ୍କର ଅଟେ ରୂପ ବିକଟାଳ । ଦେବତାଏ ଦେଖି ହେବେ ଭୟରେ ଆକୁଳ । ୨୬ । ଅମ୍ଭେମାନେ ଛାର ଅବା ବଣ ପଶୁଜାତି । ସେବକ ଛାରକୁ ଦର୍ପ ତଥ ଏଡ଼େ ଶାସ୍ତି । ୨୭ । ତ୍ରୁ ଭମନ୍ତେ ଅଇଲ ତୁମ୍ଭର ଘର କାହିଁ । ପ୍ରସନ୍ନ ହୋଇଣ କଥା ନ କହ ଦ୍ୱପାଇଁ । ୨୮ । ଜୟ ଜୟ ମହାପ୍ରଭୁ କ୍ଷମା କର ଦୋଷ । କେବଣ ନଗରେ ସ୍ଥାନ ତୁମ୍ଭ ନାମ ଦ୍ୱସ । ୩୦ । ସମସ୍ତ ଗୋପାଳେ ଅମ୍ଭେ ମାଗୁଅଛୁଁ କଥା । ଅନୁଗ୍ରହ କରଣ ଆମ୍ଭଙ୍କୁ କହ କଥା । ୩୧ । ଚନ୍ଦ୍ରସେଣା ସ୍ୱାରଜା ଶ୍ରୀଧିକା ଚନ୍ଦ୍ରମୁହିଁ । କେବଣ ଦୋଷରେ ତାକୁ ଖାଇଲ ଗୋସାଇଁ ॥ ଅନେକ ପ୍ରକାର କରି ମନାଇ କହୁଲେ । ପଞ୍ଚଦ୍ୱୀପ୍ତା ଦେଇ କରି ଶିରେ କର ଦେଲେ । ୩୨ । କବାଟ ଦୁଆରେ ମାଡ଼ି କରପଦ୍ମ ଯୋଡ଼ି । ଏକା ବେଳେ ସର୍ବେ ପାଦତଳେ ଗଲେ ପଡ଼ି । ୩୩ । ନନ୍ଦସୁତା ରହିଲେ କାଖରେ ହାତ ଦେଇ । ମନେ ମନେ ସୁମରନ୍ତି ଜଗତ-ଗୋସାଇଁ । ୩୪ । ପକ୍ଷୀକ୍ଷ ଅଟଇ ଯେ କହନ୍ତି ଶୁକମୁନି । ଶୁଣ ହେ ନୃପତି ଏ ଅପୂର୍ବ ରସବାଣୀ । ୩୫ । ଗୋପାଳେ ପଡ଼ିଲେ ଯେତେବେଳେ ଧରଣୀରେ । ଶ୍ରୀକୃଷ୍ଣ ବୋଇଲେ ସ୍ୱଧା ନେତ୍ରୁଁ ବନା ଥରେ ॥ ଗୋପାଳଙ୍କ ଅବସ୍ଥା ଗୋ ଦେଖ ଦେଖ ଗୋଇ । ହେଲି ଫଳ ପ୍ରାପ୍ତେ ସେହୁ ପଡ଼ିଛନ୍ତି ଶୋଇ । ୩୬ । ଶ୍ରୀଧିକା

ବୋଇଲେ ହଟନାଗରଙ୍କ ଗୁରୁ । ଗରବ-ଗଞ୍ଜନ ପ୍ରଭୁ ହସ ଲୁ ନ
କରୁ । ୩୮ । ପ୍ରସନ୍ନ ହୋଇଣ କଥା କହ ଭାବଗ୍ରାହୀ । ଗୋପାଳେ
ଅନେକ କଷ୍ଟ ପାଇଲେ ଗୋସାଇଁ । ୩୯ । ସ୍ୱାଧିକାର ବଚନ
ଶୁଣିଣ ରତ୍ନଧର । ବିସ୍ମୟେ ଦସ୍ୟା କହିଲେ ଭକତଯୋଦର । ୪୦ ।
ମୃଦୁହାସରେ ବୋଇଲେ ଝେଙ୍କ ମୁଣ୍ଡ ଗୋଟି । କାହିଁପାଇଁ ଭୂମି-
ପରେ ପଡ଼ିଅଛ ଲୋଟି । ୪୧ । ଛିଣ୍ଡିଯିବ ତୁମ୍ଭର ଆଜି ଫିଟିଲାରେ
କଷ୍ଟ । ଆରେ ଆରେ ଗରୁଡ଼ ବାହନ ହୋଇ ଉଠ । ୪୨ । ମୋର
କାଳପଣକୁ ରେ ସହିଅଛୁ ମୁହିଁ । ତୁମ୍ଭେ ଯେଉଁ ଦୋଷ କଲ
ଜଗତରେ ନାହିଁ । ୪୩ । ନନ୍ଦରାଜା କହିଲେ ହେ ଉଠ ଉଠ
ବେଗ । ଭୂତ କଥା କହିଲ, ଆମ୍ଭର ବଡ଼ ଭାଗ୍ୟ । ୪୪ । ତାହା
ଶୁଣି ଗୋପାଳେ ଉଠିଲେ ଶୀଘ୍ର ହୋଇ । ବେଗେ ଲୁଣ୍ଠ୍ୟଲୁଣ୍ଠ୍ୟ
ହୋଇ ପଞ୍ଚାଙ୍ଗ ଦେଲ । ୪୫ । ଶିରେ କର ଯୋଡ଼ିଣ ବୋଲନ୍ତି
ବ୍ରଜଦାସ । ଅବଧାନ କର, ପ୍ରଭୁ କଲୁଁ କେଉଁ ଦୋଷ । ୪୬ ।
ଶ୍ରୀକୃଷ୍ଣ ବୋଇଲେ ଯେ ଗଉଡ଼ବୃନ୍ଦେ ଶୁହଁ । ଯେଉଁ ଦୋଷ କଲ
ତୁମ୍ଭେ କହିଦେବି ମୁହିଁ । ୪୭ । କଦମ୍ବମୂଳକୁ କାଲି କେ କେ
ଯାଇଥିଲ । ଶତଚନ୍ଦ୍ରଦର୍ପଣ ମୋ ନେଇ ଆଣିଲ । ୪୮ । ଦେଖିଲା
ବେଳକୁ ମୁଁ ଯେ ହୋଇଅଛୁ ଅନ୍ଧ । ଜୀବନ ଯୌବନ ମୋର
ଅମୂଲ୍ୟ ସମ୍ପଦ । ୫୦ । ହ ଭୂତ ହ ଭବିଷ୍ୟ ହ ବର୍ତ୍ତମାନ କଥା ।
ତହିଁକି ଶୁହିଁଲେ ଜଣା ହିଁପୁର ବାରତା । ୫୧ । ବୃନ୍ଦାବନ ଭିତରେ
କରିଛୁ ନିଜ ଘର । ଅପଲାକଦମ୍ବତରୁ ସିଂହାସନ ମୋର । ୫୨ ।
ଯେଉଁଦିନୁ ସୃଷ୍ଟି ଗଢ଼ିଲାଣି ବିଶ୍ୱକର୍ମା । ସ୍ଥାବର ଜଙ୍ଗମ ଆମ୍ଭ
ଗୋପନର ସୀମା । ୫୩ । ଶାଳ ଶିଳ ବନରେ ଯେ ପର୍ବତ
ମାଳୁଆ । ସବୁଠାରେ କର୍ତ୍ତା ମୁହିଁ ହିଁ ପଣ୍ଡ କାଳିଆ । ୫୪ । ଆକାଶକୁ
ଦୃଷ୍ଟି କରି ଘୋରରଡ଼ ଦେଲେ । ଉଷ୍ମରର ବ୍ରହ୍ମାଣ୍ଡ କମ୍ପଇ ଥର-
ହରେ । ୫୫ । ସୁର ଯେ ଅସୁର ମୋର ଭାରୁ ନାହିଁ ଶଙ୍କା । ଶୁଣା-
ନନ୍ଦିମିରେ ମୁହିଁ ବୁଲୁଥାଇ ଏକା । ୫୬ । ରଣ୍ଡୀ ଚାମଣ୍ଡୀ ଡାକିନୀ

ଆଉ ପିଶାଚମାନ । ଏମାନେ ଅଟନ୍ତି ମୋହର ପଞ୍ଚ ସରଣୀ । ଏକ ପଦଶ୍ରକେ ଯାଇ ପାରେଁ ଯୁଣେ ବାଟ । ଆଗେ ପଛେ ଥାନ୍ତି ଯେ ନଉଡଧସ୍ତ ଥାଟ । ୬୯ । ମୋର ପାଦଘାତେ ମେରୁ ପର୍ବତ କମ୍ପଇ । ଆକାଶେ ଲାଗଇ ଶିର ସୂର୍ଯ୍ୟମଣ୍ଡଳ ଯାଇ । ୭୦ । ବସୁଙ୍କର କାଳିଆ ଅଟଇ ମହାବଳୀ ॥ ପାଟି ବସ୍ତାଇଲେ ଭବପୁର ଦେବ ଗିଳି । ୭୧ । ଭ୍ରମଣ କରଇ ମୁଁ ଯେ ଅର୍ଦ୍ଧ ସ୍ୱର୍ଗ ଯାଏ । ଅଶୀକୋଟି ଚାମୁଣ୍ଡା ଅଟନ୍ତି ମୋର ପାଏ । ୭୨ । ଯମ ଯେ ବରୁଣ ମୋର ଅଟନ୍ତି ପରଜା । ଶତଲକ୍ଷ ଭୂତଙ୍କର ଅଟଇ ମୁଁ ରାଜା ॥ ଶକ୍ତି କାହାରକୁ ମୋର ନାହିଁ କିଛି ଭୟ । ରୁମମୂଳେ ଲାଗି ରହୁଥାଏ ବସୁମତୀ । ୭୩ । ସକଳ ସ୍ତମ୍ଭଣ ଖାଇଁ ଲୋଚନ ଅଗ୍ନିରେ । ପବନଙ୍କୁ ଆଣି ମୁଁ ଚରଣେ ବାନ୍ଧିପାରେ । ୭୪ । ଇନ୍ଦ୍ର ଚନ୍ଦ୍ର ବରୁଣ ମୁଁ ସମସ୍ତଙ୍କ ପିତା । ତୁମ୍ଭେମାନେ ଗରୁଡ଼ ନ ଜାଣି ହେଲ ମତ୍ତା । ୭୫ । ନବଖଣ୍ଡ ମେଦିନୀ ନଖରେ ପାରେ ଛିଡ଼ି । ହସ୍ତ ବଢ଼ାଇଲେ ମୁଁ ସୂର୍ଯ୍ୟଙ୍କୁ ପାରେ ଧରି । ୭୬ । ଚଉଷଠି ଗଙ୍ଗା ଅଛି ମୋର ପାଦତଳ । ଚଳୁ କରି ପାରେ ମୁଁ ହିଁ ସପ୍ତସିନ୍ଧୁ ଜଳ । ୭୭ । ମୋର କୋପ କଲେ ରେ ପୃଥିବୀ କାହିଁ ଥିବ । ନାସିକା ପବନଘାତେ ମେରୁ ଛିଡ଼ି ଯିବ । ୭୮ । ଗମ୍ଭୀର ଖୋଲ ପଦ୍ମବ୍ରେ ଅଛି ମୋର ପେଟ । କଣକେ ବ୍ରହ୍ମାଣ୍ଡ ରଖି ପାରେ ଯାଠ ଆଠ । ୭୯ । ଏତିକ୍ଷଣି ସମସ୍ତଙ୍କୁ ଗିଳିଦେବି ଧରି । ତୁମ୍ଭେ ଛାର ମୋ ଦର୍ପଣ ଆଣ ଜେର କରି । ୮୦ । ଉପଦ୍ରବେ ଶତ୍ରୁ ହେବେ ମୋର ଥାଟେ ଯାଜେ । ଯନ୍ତ୍ରକ ଚାହିଁଲେ ମୁଁ କରଇ ଦଗଦଜେ ॥ ସିଦ୍ଧ ଯେ ସାଧକମାନେ ନ ପାଆନ୍ତି ଯାହା । କ୍ଷୁଧା ତୃଷା ନ ଲାଗଇ ଦେଖୁଥିଲେ ତାହା । ୮୧ । କେତେବେଳେ କେଉଁ କଥା ପଡ଼ିଯିବ ବୋଲି । ଯତ୍ନରେ କଦମ୍ବମୂଳେ ଥୋଇ କରି ଗଲି । ୮୨ । ଥୋଇକରି ଭ୍ରମଣେ ଇଚ୍ଛିଲେ ଗଲି ମୁହିଁ । ଆସି ଦେଖିଲି ବେଳକୁ ସେଠାବରେ ନାହିଁ । ୮୩ । ଦର୍ପଣ ନ ପାଇ ଯେ ମନରେ

କୋପ କଲ । ସେଥିପାଇଁ ସ୍ୱଧିକାଲୁ ମାରି ପକାଇଲ । ୭୭ । ଯହିଁ ପାଇଁ ମୈତ୍ରୀ କଲ ତାହା କି କହିବି । ଅମ୍ଭ ଦ୍ରବ୍ୟ ଦେଲେ ତୁମ୍ଭ ସ୍ୱଧିକାଲୁ ଦେବ । ୭୮ । ନନ୍ଦରାଜା ବୋଲନ୍ତି ଯେ ଶୁଣ ବୃକ୍ଷେଶ୍ୱର । ମରା ମନୁଷ୍ୟଙ୍କୁ ନେଲେ କି ହେବ ଅମର । ୭୯ । ତାହା ଶୁଣି ବୋଲନ୍ତି ଯେ ଦେବ ଚକ୍ରଧର । ମାରି ତାରି ପାରଇ ଏମନ୍ତ ବାନା ମୋର । ୮୦ । ଦନ୍ତଘାତ ପାଇ ମୂର୍ଚ୍ଛା ଯାଇଛି ମୃଗାକ୍ଷୀ । ଉଦକ ଖାଇଲୁ ଯେ ନିଶ୍ୱାସ ବହୁଅଛି । ୮୧ । ଫୁଲ ପାଣି ମନ୍ତ୍ରି କରି ସିଞ୍ଚିଦେଇ ମୁଖେ । ଜୀବମନ୍ତ୍ର ପଢ଼ିଲେ ଉଠିବ ଲକ୍ଷ୍ମୀମୁଖେ । ୮୩ । ଏବେ ତୁମ୍ଭେ ସ୍ୱଧିକାଲୁ ଏତକ୍ଷଣି ନିଅ । ଅମୂଲ୍ୟ ଦର୍ପଣ ମୋର ବେଗେ ଆଣିଦିଅ । ୮୪ । ଏହା ଯେବେ ତୁମ୍ଭେମାନେ ନ କରିବ ଜାଣ । ଆକାଶର ଚନ୍ଦ୍ର ଦିଅ କରିବି ଦର୍ପଣ । ୮୫ । ମନକୁ ନଇଲେ ହେବ ଦଣ୍ଡ ଦଇବର । କ୍ଷଣକେ ଭିତରେ ଶୂନ୍ୟ ହେବ ଘର ଦ୍ୱାର । ୮୬ । ବିଲମ୍ବ ନ କରଣ ବହନ ଆଣି ଦିଅ । ଅମ୍ଭେ ଚଳିଯାଉଅଛୁଁ ସ୍ୱଧିକାଲୁ ନିଅ । ୮୭ । ଏହା ଶୁଣି ଗଉଡ଼େ ପାଇଲେ ମନେ ବ୍ୟଥା । ଏକଲୁ ଆରେକ ଅଉ ନ କହନ୍ତି କଥା ॥ ଗୋପାଳଙ୍କୁ ଗୃହିଣୀ ବୋଲନ୍ତି ରାଜା ନନ୍ଦ । ଅଜନ୍ମ କାଲରୁଁ କାହୁ ମାଗୁଥାଇ ଚନ୍ଦ । ୮୯ । ବାଳୁତ ଭ୍ରମର ବୋଲି ଭାଷାରେ ଭୁଲାଉଁ । ତୁଇ ଏବେ ମାଗୁଅଛୁ ପାଇବା ତା କାହିଁ । ଚନ୍ଦ୍ରସେଣା ବୋଇଲା ଶୁଣି ମା ବ୍ରଜରାଜା । ସତେହେଁ କି କଣ୍ଟଥିବ ମୋହର ଭାରିଜା । ୯୧ । ତୁମ୍ଭର ପ୍ରସାଦେ ଯେବେ ଥିବ ନବବାଳୀ । ଦୁର୍ଗାଙ୍କ ଆଗରେ ଦେବି ସହସ୍ରେକ ବଳୀ ॥ ଷଣ୍ଢେ ମାଢ଼ି ସୁବର୍ଣ୍ଣ ଦେବଇଁ କରି ଦାନ । ଉହ ଶାନ୍ତି କରଣ ତୋଷିବି କତ୍ରଜନ । ୯୩ । ଚଣ୍ଡ ଶାନ୍ତି ହୋଇବ ଛାଡ଼ିବ ମନୁ ତାପ । ବଇଷ୍ଣବ ଗୋଷ୍ଠୀରେ ମୁଁ ଛଡ଼ାଇବି ପାପ । ୯୪ । ଜଗନ୍ନାଥଙ୍କ ଚରଣେ ଭିତ୍ୟେ ଥିବି ଖଟି । ବାରବ୍ରତ ଓଷା ଯେ କରିବି କୋଟି କୋଟି । ୯୫ । ସହସ୍ରେ ଦୁହିଁ ଲଗାଇ ଦେବି ଶିବଅଳ ।

ଗଙ୍ଗାରେ ସ୍ନାନ କରି ମୁଣ୍ଡାଇବ ବାଳ । ୯୬ । ବାଉ ବୁଢ଼ି ସନ୍ତତେ ବିପ୍ରଙ୍କୁ ଦାନ ଦେବ । ସ୍ୱାମୀକାଳୁ ଯେଉଁ ପଛେ ଯୋଗୀ ହୋଇଯିବ ॥ ନୋହିଲେ କାଳିନ୍ଦୀଜଳେ ଝାସ ଦେବ ଯାଇଁ । ତୁମ୍ଭେ ମୋର ଭଣୋଇ କହିଲ ତୁମ୍ଭ ଚହିଁ । ୯୮ । ନନ୍ଦରାଜା ବୋଇଲେ ଯେ ନୁହ ବାଉ ଛନ୍ନ । ରଖିଲେ ରଖିବେ ପ୍ରଭୁ ଅର-ଭଞ୍ଜନ । ୯୯ । ସୁଖବେଳା ବୁଡ଼ାଇ ତୁ ହୋଇଛୁ ବିରେଖ । ଦୁର୍ଗା ପାର କରିବେ ମଙ୍ଗଳା ହେବେ ପକ୍ଷ । ୧୦୦ । ଦୂତମୁଖୁଁ ଶୁଣିଲେ ଯେବଣ କଥାମାନ । ହସ୍ତେ ଜାଣିଲେ ବସ୍ତ୍ରବ ବିଶୋ-ଶୀଲତନ । ୧୦୧ । ଜଗନ୍ନାଥ ମହାପ୍ରଭୁ ରଖିଥିବେ ଯେବେ । ସମସ୍ତେ ବିସ୍ମର କର ଜ କରିବୁଁ ଆମ୍ଭେ । ୧୦୨ । ତେ ତାହା ଦର୍ପଣ ନେଲା ହେଲା ପରମାଦ । ଦଇବ ଆମ୍ଭଙ୍କୁ ଆସି ଲଗାଇବ ବାଦ । ୧୦୩ । କହୁ ନ ସରଇ ଯେ ଦୂତର ଯେତେ ଛଟା । ଅନ୍ଧକଳ ମାଗଇ ଆକାଶଚନ୍ଦ୍ର ଗୋଷ୍ଠୀ ॥ ବଳି ଖୁପଣରେ ଅଟେ କାରଣିଶ୍ରେମଣି । କୌଣସି ପ୍ରକାରେ ଦୂତକୁ ଯେ ନୁହେ ଜଣି ॥ ଦଇବ ଦୁର୍ଯୋଗେ ଅସି ପଡ଼ିଲା ସନ୍ଦେହ । କାହାର ବି ବୁଦ୍ଧି ଅଛି ବିସ୍ମରଣ କହ । ୧୦୫ । ଇନ୍ଦ୍ରସେଣା ବୋଇଲା ଗୋପାଳବୃନ୍ଦ ଚହିଁ । ମୋହର ବୁଦ୍ଧିଏ ଅଛି ଶୁଣକୁ ଗୋସାଇଁ ॥ ଦୁଃଖକୁ ଆମ୍ଭେ ସମସ୍ତେ ହୋଇଲୁ ଯେ ନେର । ଆକାଶର ଚନ୍ଦ୍ର ଦେବା ମନମତ କର । ୧୦୬ । ସେ ଯେବେ ସ୍ୱାମୀକୁ ଆଣି ଦେବ ଆମ୍ଭ କୋଳେ । ପଛେ ଆନ ବିସ୍ମର କରିବା ନଚନ୍ଦେବେଳେ ॥ ଧନ ରତ୍ନ ଦେଇ ତାକୁ ପ୍ରବୋଧ କରିବା । ଧନ ଗୃହ ପାଞ୍ଚ ହେଲେ ଲୁହାଇଣ ଥିବା ୧୦୮ । ଏତେ ମତେ ଦୂତ ଯେବେ ଦେବ ଚଡ଼ାବନ୍ଧ । ଗୋପନଗ୍ରାମୀମା ପଛେ ପଳାଇବା ଛନ୍ଦ । ୧୦୯ । ନନ୍ଦରାଜା ବୋଇଲେ ହେ ଇନ୍ଦ୍ରସେଣା ଭଲ । ଆପଣାର ଅଛତ ବି ପରତାପେର ଥାଇ । ୧୧୦ । ସ୍ୱାମୀକା ପଛଲଷୁତ ହୋଇଲୁ କାତର । କାହାପାଇଁ ନେ ଅବା ଛଡ଼ିବ ଘର ଦ୍ୱାର । ୧୧୧ ।

ଏ ଗୋପନଗରେ ବାରୁ ଘର ନାହିଁ କେତେ । ଅକାଲ ଉତ୍ପାତ
ଏକ ପଡ଼ଛୁ ତୋ ମାଥେ । ୧୧୧ । ଆକୁଳ ହୋଇଣ ବାରୁ ବୋଲୁ
ଯେଉଁ ବାଣୀ । ମିଛକଥା କହୁଲେ ଭୂତକୁ ନୋହେ ହାଣି । ୧୧୨ ।
ଧନ ରତ୍ନ ଦେଇ ଅବା ପାଦହିଁ ଧରିବା । କ୍ଷଣକେ ଭଲିଲେ
ବାରୁ ସମସ୍ତେ ମରିବା ॥ ତୁମ୍ଭେମାନେ ଗଉଡ଼ ହୋ କହୁଛ ନ
ଜାଣ । ଆମ୍ଭର ବୁଦ୍ଧିଏ ଅଛୁ କହୁବା ତା ଶୁଣ । ୧୧୪ । ଯାହାକୁ
ଯେମନ୍ତ ରୂପେ ମିଳିବ ଯେ ବଳି । ଉପଳ ଗୋଟିଏ ବାରୁ ଆଣ
ବେଗ କରି । ୧୧୫ । ଷଡ଼ରସ ବ୍ୟଞ୍ଜନ ଅମୃତରସ ଦେଇ ।
ପାଦେ ପଡ଼ ଶୋଇବା ଭୂମିରେ ଲମ୍ବ ହୋଇ । ୧୧୬ । ଭୂତ
ପ୍ରେତ ଇତ୍ୟାଦ ଯେତକ ପିଶାଚିଣୀ । ଖାଇବାର ଅର୍ଥେ ସିନା
ଲାଗିଥାନ୍ତି ପୁଣି । ୧୧୭ । ବରଷକ ଭୋଗ ଯେ ଦିନକେ ଭିଆଇବା
ଯେତେ କଳାଗାଇ ସବୁ ସଜାଡ଼ିଣ ଦେବା । ୧୧୮ । ଏମନ୍ତ
ବୋଲିଣ ଯେତେ ଗୋପନଗ୍ରବାସୀ । ଏକଠାବ ହୋଇଣ ଯେ
ଭଲ୍ଲି ଛନ୍ତି ବସି । ୧୧୯ । ଗୋପାଳଙ୍କ ଦଣ୍ଡର କରିବା ଦେଖି
ଏଣେ । ହିପଣ୍ଡାଳି ଆବୁଡ଼ ଡ଼ାକ ଦେଲା ତେଣେ ॥ ଆରେ ଆରେ
ଗଉଡ଼େ ତୁମ୍ଭର ନାହିଁ ଡ଼ର । ଏହା ଶୁଣି ଗଉଡ଼େ କମ୍ପିନ୍ତି ଥର-
ହର । ୧୨୦ । ଶତଶ୍ଚ ଚନ୍ଦ୍ରଦର୍ପଣ ଆଣିଛ ଗୋସ୍ୱାଲ । ଏକଚନ୍ଦ୍ର
ମାଗିଲେ ରେ ନ ଦିଅ କପାଳ । ୧୨୧ । ଦେବ କି ନ ଦେବ ଶୁଣି
ଛାଡ଼ିବା ସନ୍ଦେହ । ନୋହୁଲେ କି କଥା ଅଛୁ କରି ବିଣ କହ । ୧୨୩ ।
ନନ୍ଦସ୍ୱାଳ କହୁଲେ ଶୁଣିମା ଭୂତେଶ୍ୱର । ଅରକ୍ଷିତ ଲୋକଙ୍କୁ
ଏଥିକୁ ଇଚ୍ଛାକର । ୧୨୪ । ଦର୍ପଣ ହଜଲା ବୋଲ କଲୁଁ ଆମ୍ଭେ
ଦୋଷ । ସକଳସହଣି ନାଥ ନ କରନ୍ତୁ ରୋଷ । ୧୨୫ । ସେବକର
ସେବକ ଭୃତ୍ୟର ଭୃତ୍ୟ ହୋଇ । ଜୀବ ଥିବାଯାଏଁ ଆମ୍ଭେ ଖଟିବୁ
ଗୋସାଇଁ ॥ ଦେବା ନବାରେ ତୁମ୍ଭଙ୍କୁ ନୋହୁଁ ଯେ କୁଣ୍ଠିତ ।
ତୁମ୍ଭର ରହଲ ଏହୁ ଗୋପନଗ୍ର ସତ । ୧୨୬ । ଆନ କିଛୁ
ଦେବାକୁ ଯେ ନ ହେବୁଁ ଲାଜନ । ବାରମାସୀ ତୁମ୍ଭପୂଜା କରିବୁଁ

ଉଆଣ । ୧୨୮ । ଯାହା ତାହା କରଣ ସକଳ ସଜ୍ଜା ଦେବୁଁ ।
ହୃଷ୍ଟ ହୃଦୟ ଭାବେ ସେବା କରିଥିବୁଁ । ୧୨୯ । ନନ୍ଦସୁତା ମୁଖରୁ
ଏମନ୍ତ ବାଣୀ ଶୁଣି । ହସ ହସ ହୋଇ ଦୂତ କହିଲା ଯେ ପୁଣି ॥
ଗଉଡ଼ ବାଉଡ଼ ହାଉଡ଼ ଯେ ଜାତି ତୁମ୍ଭେ । ବେଲୁଁ ଉପତ
ବୋଲି ନ ଜାଣୁ ତା ଆମ୍ଭେ । ୧୩୧ । ଯେତେ ଦୋଷ କଲେ
ତୁମ୍ଭ ଆପଦ ଖଣ୍ଡିବା । ସେବକ ଲୋକଙ୍କୁ କେତେବେଳେ ଦ
ଦଣ୍ଡିବା । ୧୩୨ । ଏବେ ତୁମ୍ଭେ ଗଉଡ଼େ ବହନେ ଯାଅ ଚଳି ।
ବେଗ ବେଗେ ଆଣ ଯେ କରିବା ଦୂତକେଳି । ୧୩୩ । ଗୋପାଳେ
ବୋଇଲେ ପ୍ରଭୁ ସାବଧାନ ହୁଅ । ବେଗ ଆସି ଦେବୁ ଅମୃ
ସ୍ୱାଦୁକାରୁ ଦଅ । ୧୩୪ । ଦୂତ ବୋଲେ ମୃତସଞ୍ଜୀବନମନ୍ତ୍ର ପଢ଼ି ।
ମଲା ମନୁଷ୍ୟଙ୍କୁ ଆଜ ଜୀଆଇବା ଟିକି । ୧୩୫ । ଇସ୍ତ୍ରୀ ଯେ ଚମଣ୍ଡା
ସବୁ ମୋର ପରିବାରୀ । ବାଣ୍ଟିଛନ୍ତି ସ୍ୱାଦୁକାରୁ ଶତ ଭାଗ କରି ।
ଶୀତଳ ମନୋହର ସିନା ସେମାନଙ୍କୁ ଦେବା । କଥାଏ କଥାଏ କହି
ତାହାଙ୍କୁ ବୋଧିବା । ୧୩୭ । ଏବେ ଯାଅ ସମସ୍ତେ ସ୍ୱାଦୁ ଥାଅ
ମୁର୍ଚ୍ଛି । ଭରତନ ଯାଏ ତୁମ୍ଭେ ନ କହିବ କିଛି । ୧୩୮ । ଅପୂର୍ବ
ପଦାର୍ଥ ଯେତେ ଥିବ ଉପହାର । ଆସି ମହି ଅଗଣାରେ ସବୁ ଠୁଳ
କର ॥ ସମସ୍ତ ପଦାର୍ଥମାନ ଏକାଠି ଥୋଇବ । ତଗ ପାଶେ
ଗୋଟିଏ ଯେ କେହି ନ ରହିବ । ୧୪୦ । ମହାକେଳି ଭ୍ରମଣ
କରିବୁଁ ଉଣାସ୍ତ । ହମୁରେ ପଡ଼ଲେ କେହି ନ ଯିବେଟି ବର୍ତ୍ତି ॥
ଶତଲକ୍ଷେ ଦୂତ ଯେ ପଞ୍ଚାଶ କୋଟି ଇସ୍ତ୍ରୀ । ଠହଠହ ସିଙ୍ଗରେ
ବହନ ମୁଖ ମଣ୍ଡି ॥ ଅଶିକୋଟି ପିଶାଚୁଣୀ ସହସ୍ରେ ଚମଣ୍ଡା । ଏକ
କରେ ଝପର ଆରେକ କରେ ଖଣ୍ଡା । ୧୪୩ । ଏମାନଙ୍କୁ ଶୀତଳ
ମନୋହର ସଜ୍ଜା ଦେବ । ଭରତନ ପରେ ସ୍ୱାଦୁକାରୁ ବଣ୍ଟାଇବ ॥
ନନ୍ଦସୁତା ବୋଇଲେ ଯେତେକ ଆଜ୍ଞା ଦେଲ । ତୁମ୍ଭଙ୍କ ଯେ
ଯୋଗାଇବ ଅମ୍ଭଙ୍କୁ ସେ ଭଲ । ୧୪୫ । ଦୂତ ବୋଲେ ନଗର
ଯେ ପର୍ବତ ମାଳ ଆ । ସବୁଠାରେ କର୍ତ୍ତା ମୁହିଁ ଦିପଣ୍ଡକାଳିଅ ॥

ଅମୃତ ପ୍ରସାଦରେ କାହ୍ନଁକ ତୁମ୍ଭେ ପିବ । ଗୋପନଗ୍ର ଲୋକ ତୁମ୍ଭେ ଛତ୍ରିନ୍ଦ୍ରରେ ଥିବ । ୪୭ । ଏବେ ତୁମ୍ଭେ ସମସ୍ତେ ଘରକୁ ଚଳିଯାଅ । ଉପହାର ଦ୍ରବ୍ୟ ଆଣି ବେଗ କରି ଦଅ । ୪୮ । ଏହା ଶୁଣି ବାହାର ହୋଇଲେ ଗୋପବୃନ୍ଦ । ଆସ ଆସ ବୋଲି ଅଗେ ଚଢ଼ାଇଲେ ନନ୍ଦ । ୪୯ । ଚନ୍ଦ୍ରସେଣା ଉଆସକୁ ବେଗେ ଗଲେ ଚଳି । ଯେଉଁଥାର ଇଚ୍ଛାରେ ଯେ କରନ୍ତି ଭୂତକେଳି ॥ ଲକ୍ଷେଭାର ଲବଣୀ ବ୍ୟଞ୍ଜନ ଭଜା ଘଣ୍ଟା । ଲକ୍ଷେଭାର ଅମୃତମଣୋହି ଦବ୍ୟ ପିଠା । ୫୧ । ଖଣ୍ଡପାକ ନବାତ ଯୋଗାଡ଼ ଲକ୍ଷେ ଭାର । ଲକ୍ଷେ ଭାର ଦୁଧ ଛେନା ସର ଲକ୍ଷେ ଭାର । ୫୨ । ପାଞ୍ଚ ଲକ୍ଷଭାର ଯେ ଗୋପାଳମାନେ ଘେନି । ସବୁ ସଞ୍ଜା ଯୋଗାଡ଼ ହୁଅଇଲେ ଘଇନି । ୫୦ । ଚନ୍ଦନ କସ୍ତୂରୀ ଭାର କେ କରିବ ମୂଲ୍ୟ । ଅଶୀ ଭାର କର୍ପୂର ପଞ୍ଚାଶ ଭାର ଫୁଲ । ୫୩ । ସୁନାବେଣ୍ଟ ଚାମର ଯେ ଅପୂର୍ବ ଆଲଟ । ଘରେ ଘରେ ହୁଆଇଲେ ଷୋଳସସ୍ର ଖଟ ॥ ଅପୂର୍ବ ଦାସୀଣୀ ଯେ ଶୃଙ୍ଗାରମାନ କରି । ଉଦଣ୍ଡ ଆଲଟ ପାଟଛତ୍ର-ମାନ ଧରି । ୫୫ । ଗୋପକ୍ରୀଡ଼ା ରସ ଏ ଅପୂର୍ବ ଭୂତକେଳି । ଅନ୍ତ କରି ନ ପାରିଲେ ଯାହା ବ୍ରହ୍ମା ଶୂଳୀ । ୫୭ । ମାନବ ହୋଇଣ ମୁଁ ତା ଜାଣିବଇଁ କାହିଁ । ବେଦରେ ବାଳୁତ ମୁଁ ଯେ ଅଜ୍ଞାନ ଅଟଇ ॥ ପାଠ ଶାଠ ନ ଜାଣଇଁ ମୂର୍ଖମତି ହିନା । ଜଗନ୍ନାଥ ଦୟା କଲେ ପୂର୍ବର ବାସନା । ୫୮ । ଦୀନବନ୍ଧୁ ଦୟାରୁ ଯେ କରଇ ପ୍ରକାଶ । ଭୂତକେଳି ଚରିତ କହଇ କୃଷ୍ଣ ଦାସ ।୫୯।

---

## ଚତୁର୍ଥ ଅଧ୍ୟାୟ ।

ଏଥୁ ଅନନ୍ତରେ ଯେ ଶୁଣିମା ଦିବ୍ୟଗୀତ । ପୁଣ ପରୀକ୍ଷିତେ ଯେ କହନ୍ତି ଶୁକଯତି । ୧ । ଉପହାର ସଜ କରି ବରଜପତି । ଚଳି-ଗଲେ ଗୋପାଳେ ଯେ କନ୍ଧେ ଭାର ଘେନି । ୨ । ଆଗରେ ଚଢ଼ାଉ ଯେ ଅଛନ୍ତି ଚନ୍ଦ୍ରସେଣ । ଦୁଇ କ୍ରୋଶ ପର୍ଯ୍ୟନ୍ତେ ଲାଗିଛୁ

ଖାରମାନ ॥ ଏମନ୍ତେ ଭୂତ ନିକଟେ ହେଲେ ପରବେଶ । ଖାର
ତଳେ ଥୋଇ ଓଲଗିଲେ ବ୍ରଜଶିଷ୍ୟ । ୪ । ଭିତର ଅଗଣା କୋଠା
ପିଣ୍ଡା ହେଲ ଘଞ୍ଚା । ଉଆସକୁ ଲଗାଇ ଥୋଇଲେ। ସବୁ ସଞ୍ଚା । ୫ ।
ନନ୍ଦସୁତା ବୋଇଲେ ଶୁଣିମା ଭୂତମଣି । ଭକ୍ଷବଣକୁ ଭୋଗ
ଦିଅଇଲୁ ଆଣି । ୬ । ପରବାର ଦେଖଣ କ୍ରୀଡ଼ାରେ ପ୍ରଭୁ
ତୁମ୍ଭେ । ଥାଅ ଏବେ ଆଜ୍ଞା ଦେଲେ ଚଳିଯିବୁଁ ଆମ୍ଭେ । ୭ ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ସମସ୍ତେହେଁ ଯିବ । ଭିକ୍ଷନ ପରେ
ଯାଇଁ ସ୍ୱଧାକୁ ଯେ ନେବ । ୮ । ଆଜ୍ଞା ପାଇ ଚଳିଲେ ଆନନ୍ଦ-
ଚିତ୍ତ ହୋଇ । କାଖେ ହସ୍ତ ଦେଇ ଗଲେ ପଛଘଞ୍ଚା ଦେଇ । ୯ ।
ଉପହାର ଦ୍ରବ୍ୟ ପାଇ ବରଜସୁନ୍ଦରୀ । ଜୟ ଜୟ ଧ୍ୱନି କଲେ
ଅତି ଉଚ୍ଚଙ୍କର । ୧୦ । ଯେ ଯାହାର ମନ୍ଦିରେ ଗୋପାଳେ ଯାଇ
ମିଳି । କୃଷ୍ଣ ମୁଖ ଚାହିଁଣ ବୋଲନ୍ତି ନବବାଳୀ । ୧୧ । ସ୍ୱାଧିକା
ବୋଇଲେ ଏବେ କି ବୁଦ୍ଧି କରିବା । ତୁମ୍ଭର ବୁଦ୍ଧିରେ ପ୍ରଭୁ
ନିଶ୍ଚୟେ ମରିବା । ୧୨ । ଏତେ ଦ୍ରବ୍ୟମାନ ତୁମ୍ଭେ ଅଣାଇଲ ହରି ।
ଦୁଷ୍ଟବୁଦ୍ଧି ଗଉଡ଼େ ଜାଣିଲେ ନିଶ୍ଚେ ମାରି । ୧୩ । ସଙ୍ଗତରେ
କେହି ନାହିଁ କାହାକୁ ଯେ ଦେବୁଁ । ଏହା କେ ଖାଇବ ନାଥ କି
ବୁଦ୍ଧି କରିବୁଁ । ୧୪ । କି କୂଟ କପଟ ତୋର ଜଣାଯାଉ ନାହିଁ ।
ଆଉ କେଉଁ କଉତୁକ ଦିଆଇବୁ ରହି । ୧୫ । ଶ୍ରୀକୃଷ୍ଣ ବୋଇଲେ
ସଖି ହୋଇଲୁକି ବାଇ । ହସ୍ତର ମାଣିକ୍ୟ କି ପରକୁ ଯାଉଦେଇ ॥
ଖାଇବାର ପଦାର୍ଥ କାହାକୁ ଆମ୍ଭେ ଦେବୁଁ । ତୋତେ ମତେ
ଦୁହିଁଙ୍କି ଗୋ ନ ଅଣ୍ଟିବ ସବୁ । ୭ । ଏଥକୁ ଗୋ ଭ୍ରାନ୍ତ ତୁ ନ କର
ନବବାଳି । ଦେଖୁ ଦେଖୁ ଅର୍ଦ୍ଧେକ ମୁଁ ଦେଇଯାରେ ଗିଳି । ୮ ।
ସ୍ୱାଧିକା ବୋଇଲେ ପ୍ରଭୁ ଯଶୋଦାକୁମର । କେମନ୍ତେ ଖାଇବ
ନାଥ ମେତେ ଅଗୋଚର । ୧୯ । ପର୍ବତ ଆକାର ହୋଇ
ପଡ଼ିଅଛି ଯହିଁ । ଦୁଇ ଜଣଙ୍କରେ କେତେ ଖାଇବା ଗୋସାଇଁ ॥
ତାହା ଶୁଣି ସ୍ୱାଧ ।କୁ ବୋଲନ୍ତି ପଦ୍ମଆଖି । ଗରବଗଞ୍ଜନ ବାନା ଜାଣୁ

ହ ନା ସଖି । ୨୧ । ଏ ଛାର କଥାକୁ ହସଁ। ଡ଼ରୁ ଗୋ ସୁନ୍ଦରୀ ।
ଅଶେଷ ବ୍ରହ୍ମାଣ୍ଡ ମୋ ଗର୍ଭରେ ଅଛୁ ପୂରି । ୨୨ । ରାଧିକା
ବୋଇଲେ ତୁମ୍ଭେ ମଦନମୋହନ । ମିଛକଥା କହୁଲେ କି
ପ୍ରତେ ଯିବ ମନ । ୨୩ । ଏକ ଘର ମଧ୍ୟରେ ରହୁଛ ବଂଶୀଧର ।
ଅଶେଷ ବ୍ରହ୍ମାଣ୍ଡ ତୁମ୍ଭେ ରଖିଛ କାହିଁର । ୨୪ । ମୁରଲୀ ଗୋଟିଏ
ଧରି ବାଉଥାଅ ଛାଣି । ଗୋପୀଙ୍କି ଭଣ୍ଡିଲ ପ୍ରାୟେ ମୋତେ ଅଛ
ଜାଣି । ୨୫ । ନଚାଇ ରଚାଇ ତାଙ୍କୁ ବବୁଥାଅ ଯେବେ । ମାୟା-
ଧର ପୁରୁଷ ଯେ ମିଳୁଅଛି ସବେ । ୨୬ । ଗୋପାଳଙ୍କୁ ଭଣ୍ଡିଲ ଯେ
କାଷ୍ଟପଣ କରି । ମିଛେହେଁ ବୋଇଲ ମୁଁ ସୂର୍ଯ୍ୟଙ୍କ ପାରେଧରି । ୨୭ ।
ଭୟ ପାଇ ଗରୁଡ଼େ ତୁମ୍ଭଙ୍କୁ କଲେ ସେବା । ସୋହ୍ନପର କରଣ
ଯେ ମୋତେ ଭଣ୍ଡ ଅବା । ୨୮ । କେମନ୍ତ ପ୍ରକାରେ ମୋତେ
ଭଣ୍ଡିବ ଯେ ନାହିଁ । ତୁମ୍ଭଠାରୁ ଚତୁର ଅଟଇ ପ୍ରଭୁ ମୁହିଁ । ୨୯ ।
ନଖ ମୁଖ ନାସିକା କୋମଳ ଭୁଜଦଣ୍ଡ । ତୁମ୍ଭେ କେମନ୍ତେ ବହୁଛ
ଅଶେଷ ବ୍ରହ୍ମାଣ୍ଡ । ୩୦ । ବାଳକ କ୍ରମର ତୁମ୍ଭେ ବ୍ୟବହାରେ ହୁନ୍ଦୀ ।
ବାଳପୁଅ ମାଇଲେ ଘରକୁ ଯାଅ କାନ୍ଦି । ୩୧ । ଉମ୍ଭ ହୋଇ
ଛୁଅଲୁ ଯେ ଭଣ୍ଡି ଲୋଡ଼ ମନ । କାଲ ପ୍ରାଏ ମଣଇଁ ତୁମ୍ଭର ଜନ୍ମ-
ଦନ । ୩୨ । କୋଳରେ ବସାଇ ଯେ ଖୁଆଇଁ ଦୁଧ ଗୋଟି ।
ଲୁଗାପିନ୍ଧି ନ ଆସେ ତୁମ୍ଭଙ୍କୁ ପରିପାଟୀ । ଶେଷ ହୋଇ ଅଛୁ ତୁମ୍ଭ
ଦେହଗୋଟି ଯହିଁ । ଅଶେଷ ବ୍ରହ୍ମାଣ୍ଡ ଖଣ୍ଡେ ସଞ୍ଚରିଛ କାହିଁ । ୩୪ ।
ଶ୍ରୀକୃଷ୍ଣ ବୋଇଲେ ରାଧା ନ ଜାଣୁ ଗୋ କିଛି । କୋଟିଏ
ବ୍ରହ୍ମାଣ୍ଡ ମୋ ଗର୍ଭରେ ଲୁଚିଅଛି । ୩୫ । ମିଛ ମଣି ରମଣି ଗୋ ନ
ହୁଅ ବିମୁଖ । ପାଟି ବିସ୍ତାରିଣ ଦେବ ପ୍ରତ୍ୟକ୍ଷରେ ଦେଖ । ୩୬ ।
ଛଳ ନୟନେ ତୁ ଗୋ ଚାହାଁ ସର୍ଗାଭୁଣି । ସତ ମିଛ ହୋଇଲେ
ବୁଝିବୁ ଏହୁକ୍ଷଣି । ଆମ୍ଭର ବଚନ ଯେବେ କଲୁ ଅପରତେ ।
ଗରବଗଞ୍ଜନ ବାନା ଦେଖାଇବ ତୋତେ । ୩୭ । ରାଧିକା
ବୋଇଲେ ପ୍ରଭୁ ସେନ ମୋର ସେବା । ମୁଖ ବିସ୍ତାରିଣ ହଅ କି

ଦେଖଇ ଅବା । ୪୦ । ଦେଖିଲେ ମୁଁ ପ୍ରତେଯିବ ଶୁଣ ନନ୍ଦ ବଳା ।
ସତ ଯେ ଶୁକଳ ପ୍ରଭୁ ମିଛ ଅଟେ କଳା । ୪୧ । ଏହା ଶୁଣି ହରଷ
ହୋଇଲେ ଜଗନ୍ନାଥେ । ପାଦ୍ଧ ବସାଇଲେ ପ୍ରଭୁ ସ୍ୱର୍ଗପୁର ଯାଏ ॥
ମର୍ତ୍ତ୍ୟପୁର ସହିତେ ପାତାଳ ପୁର ପୋଡ଼ି । ଏତେ କହି ବୋଇଲେ
ଭୁ ଶୁଣ ରେ ବହ୍ମୋଷ୍ଟି । ୪୩ । କହୁଛୁ ଆନନ୍ଦ ହୋଇଣ ପଦ୍
ଆଖି । ଗୃଧ୍ରକାକୁ ବୋଲନ୍ତି ଯେ ଦେଖ ପ୍ରାଣସଖି । ୪୪ । ସାମାନ୍ୟ
ଉଦରେ ଯେ ବସ୍ତାରଅଛୁ ହେଲେ । ହ ହ ଅଛୁ ଭଲ କରି ଗୃଧ୍ରୁଁ
ହ ନା ଡୋଳେ । ୪୫ । ତାହା ଶୁଣି ଗୃଧ୍ରକା ଉଠିଲେ ସ୍ଥିର
ହୋଇ । ଶ୍ରୀହରିଙ୍କ ଉଦରକୁ ଦେଖିଲେକ ଅନାଇଁ । ୪୬ । ଅଛଣସ୍ତ
ଗମ୍ଭୀର ଅଟଇ ଯେତେ ମୋଟା । ପ୍ରଥମେ ଦେଖିଲ ଯେ ସମୁଦ୍ର ସାତ
ଗୋଟା । ୪୭ । ଦ୍ୱିତୀୟେ ଦେଖିଲ ଭସ୍ମଙ୍କର ମେଘମାଳ । ଗଡ଼ଦଗ
ଆଚ୍ଛାଦ କରୁଛନ୍ତି ଜଳ । ୪୮ । କେବଣ ସ୍ଥାନରେ ଅଗ୍ନି ହକ-
ଟ୍ଟାଳ ଗର୍ଜେ । ପବନ ହସାଟେ କାହିଁ ମେରୁ ଗିରି ଭାଜେ । ୪୯ ।
ଦେଉଳ ମଣ୍ଡପ କାହିଁ ଦିବ୍ୟ ଛମୁଣ୍ଡିଆ । ଜଗତୀ ଅଟ୍ଟାଳି କାହିଁ
ମେଢ଼ ଯେ ମଣ୍ଡୁଆ । ୫୦ । କେଉଁଠରେ ଅପୂର୍ବ ପୋଖରୀ ଅଛୁ
ହୋଇ । କେଉଁଠାର ନଦୀମାନେ ଯାଉଛନ୍ତି ବହି । ୫୧ ।
କେବଣ ସ୍ଥାନରେ ଯୁଦ୍ଧ କରୁଛନ୍ତି ମାଲ । କେଉଁଠାରେ ଚରୁଛନ୍ତି
ଗୋଧନର ପଲ । ୫୨ । କେଉଁଠାରେ ଭିକ୍ଷୁକ ଗୃଉଲ ଭିକ୍ଷା
ମାଗି । କେଉଁଠାରେ ଯୋଗିମାନେ ବସିଛନ୍ତି ଜାଗି । ୫୩ ।
କେଉଁଠାରେ ବଣ ସବୁ ହୋଇଅଛୁ ଗୋପ୍ୟ । କେଉଁଠାରେ
ଋଷିମାନେ କରୁଛନ୍ତି ତପ । ୫୪ । କେବଣ ସ୍ଥାନରେ ବସ୍ତୁ
ପୁରାଣ ବଖାଣ । କେଉଁଠାରେ ବ୍ରାହ୍ମଣ ପଢ଼ନ୍ତି ବେଦଶାସ୍ତ୍ର । ୫୫ ।
ସାଧୁଜନ କେଉଁଠାରେ ହକା ହଣା ଧନ । କେଉଁଠାରେ ବସିଛୁ
ଅପୂର୍ବ ହାଟମାନ । ୫୬ । କେଉଁଠାରେ ହେଉଅଛୁ କୀର୍ତ୍ତନର
ରଙ୍ଗ । କେଉଁଠାରେ ପୂର୍ତ୍ତିଣ ଦେଖଇ ଶମ୍ଭୁଲିଙ୍ଗ । କେଉଁ-
ଠାରେ ହରିବଂଶ ଭାରତ ପୁରାଣ । କେଉଁଠାରେ ହେଉଅଛୁ

ଭାରତ ବଖାଣ । ୫୮ । କେବଣ ସ୍ଥାନରେ ତହିଁ ବୈକୁଣ୍ଠ ଯେ ଦଶି । ଶ୍ରୀକୃଷ୍ଣଙ୍କୁ କୋଳେ ଧରି ମାଏ ଛନ୍ତି ବସି । ୫୯ । କେଉଁଠାରେ ମୀନରୂପ ଧରି ରତ୍ନଧର । ଶଙ୍ଖାସୁର ମାରୁଛନ୍ତି ସମୁଦ୍ର ଭିତର । ୬୦ । କେଉଁଠାରେ କୂର୍ମରୂପ ଧରି ଭାବଗ୍ରାହୀ । ନବଖଣ୍ଡ ମେଦିନୀ ପିଠିରେ ଛନ୍ତି ବହି । ୬୧ । କେଉଁଠାରେ ବରାହ ରୂପରେଛନ୍ତି ହରି । ନବଖଣ୍ଡ ମେଦିନୀ ଦନ୍ତରେ ଛନ୍ତି ଧରି । ୬୨ । ନୃସିଂହମୂରତି ହୋଇ କେବଣ ସ୍ଥାନରେ । ହିରଣ୍ୟକୁ ବିଦାରି ଅଛନ୍ତି ଜାନୁପରେ । ୬୩ । ବାମନମୂରତିପ୍ରଭୁ ବିଷ୍ଣୁ ତେଜୋମୟେ । ପାତାଳକୁ ବଳିକି ଚାପନ୍ତି ଧରି ପାଏ । ୬୪ । କେଉଁଠାରେ ପର୍ଶୁରାମ ହୋଇଣ ଯେ ଦେଈ । ଅଯୋଧ୍ୟାକୁ ଗଲାବେଳେ ଓଗାଳନ୍ତି ବାଟ । ୬୫ । କେଉଁଠାରେ ରଘୁନାଥ ଆମଙ୍କ କୋଦଣ୍ଡ । ଘୋରଯୁଦ୍ଧେ କାଟୁଛନ୍ତି ଦଶଶିର ମୁଣ୍ଡ । ୬୬ । କେଉଁଠାରେ ନନ୍ଦଘରେ ଅବତାର ହରି । ଯଶୋଦା କୋଳରେ ବସିଛନ୍ତି ବନମାଳୀ । ୬୭ । କେଉଁଠାରେ କଳକିମୂରତି ଧରି ଉଭା । ବୌଦ୍ଧରୂପେ ବୌଦ୍ଧଖଣ୍ଡା ଦିଶୁଅଛୁ ଶୋଭା ॥ କେଉଁଠାରେ ମାଳଫିରୂପେଣ ଜଗନ୍ନାଥ । ଧରିଅଛନ୍ତି ବଇଲୋଚନ କାନ୍ତି ହସ୍ତ । ୬୯ । କେଉଁଠାରେ ବିଷ୍ଣୁରୂପେ ଧରିଛନ୍ତି ମୁନି । ମହାଯଜ୍ଞ କରୁଛନ୍ତି ଶ୍ରୀରାମଙ୍କ ସେନି । ୭୦ । କେଉଁଠାରେ ବିସ୍ତାର କରିଣ ଭୁଜଦଣ୍ଡ । ଓଟାରିଣ ଭାଙ୍ଗୁଛନ୍ତି ଶିବଙ୍କ କୋଦଣ୍ଡ । ୭୧ । କେଉଁଠାରେ ଶ୍ରୀରାମ ମୂରତି ଧରି ଉଭା । କେଉଁଠାରେ ସୀତାଙ୍କୁ ଯେ ହେଉଛନ୍ତି ବିଭା । ୭୨ । କେଉଁଠାରେ ବନବାସ ଜଗତ କରତା । କେଉଁଠାରେ ମୁନିମାନେ ଧରିଛନ୍ତି ଛତା । ୭୩ । କେଉଁଠାରେ କୌଶଲ୍ୟା କରୁଛନ୍ତି କୋହ । କେଉଁଠାରେ ଦଶରଥ ଛାଡୁଛନ୍ତି ଦେହ । ୭୪ । କେଉଁଠାରେ ମାୟାମୃଗ ମାରିବାକୁ ଇଚ୍ଛି । କେଉଁଠାରେ ସୀତାକୁ ଯେ ରାବଣ ନେଉଛି । ୭୫ । କେଉଁଠାରେ ଗଜକୁ ଭିତାରେ ପୀତବାସ । ରନ୍ତ ପେଷି କୁମ୍ଭୀରକୁ କରୁଛନ୍ତି

ନାଶ ।୭୬। କେଉଁଠାରେ ଶୂନ୍ୟରୂପ ହୋଇଛୁ ଭଆଣ । ଉନ୍ମ-ମାଳୁ ବେଢ଼ିଣ ଉଦୟ ଭାସ୍କରେ ।୭୭। କେଉଁଠାରେ ଅମର-ମଣ୍ଡଳ ସ୍ୱର୍ଗବାସୀ । ସୁଧର୍ମାସଭାରେ ଯେ ସମସ୍ତେ ଛନ୍ତି ବସି ।୭୮। ଇନ୍ଦ୍ର ଚନ୍ଦ୍ର କୁବେର ବରୁଣ ବିଶ୍ୱକର୍ମା । କେଉଁଠାରେ ସ୍ତୁତି କରୁଛନ୍ତି ବେଦବ୍ରହ୍ମା ।୭୯। କେଉଁଠାରେ ବଟପତ୍ରେ ଶୋଇଛନ୍ତି ହରି । ମାର୍କଣ୍ଡ ଋଷିଙ୍କି ଗର୍ଭରେ ଛନ୍ତି ଧରି ।୮୦। ବିଶ୍ୱରୂପ ପ୍ରକାଶ ହୋଇଛୁ କେଉଁଠାରେ । ଅଶେଷ ବ୍ରହ୍ମାଣ୍ଡ ଅଛୁ ଗର୍ଭ-ଭିତରେ ।୮୧। କେଉଁଠାରେ ସୁରପତି ସଙ୍ଗେ ବନମାଳୀ । ବାମକରେ ମନ୍ଦରପର୍ବତ ଛନ୍ତି ତୋଳି ।୮୨। କେଉଁଠାରେ କଦମ୍ବମୂଳରେ ବଜେ କାହ୍ନୁ । ତ୍ରିଭଙ୍ଗମୂରତି ଧରି ବାଉଛନ୍ତି ବେଣୁ ।୮୩। କେଉଁଠାରେ ଗୋପୀଙ୍କି ଓଗାଳିଛନ୍ତି ବାଟ । ପିଙ୍ଗଳ ପଣନ୍ତି ଧରି ମାଗୁଛନ୍ତି ଘାଟ ।୮୪। କେଉଁଠାରେ ବହୁଛୁ ଯମୁନା ନଦୀଜଳ । କେଉଁଠାରେ ଶ୍ରୀକୃଷ୍ଣ କରନ୍ତି ନାବଖେଳ ।୮୫। କେଉଁଠାରେ ବସ୍ତ୍ରହରିଛନ୍ତି ଗୋପୀନାଥ । କେଶିର ଗର୍ଭରେ ନେଇ କରୁଛନ୍ତି ହସ୍ତ ।୮୬। କେଉଁଠାରେ ବୃନ୍ଦାବନେ ବଜେ ବନମାଳୀ । ମୁଖବାଟେ ବ୍ରହ୍ମଅଗ୍ନି ଦେଉଛନ୍ତି ଟେଳି ।୮୭। କେଉଁଠାରେ ଶ୍ରୀକୃଷ୍ଣ ଅଳୁଢ଼ଶାଳେ ରହୁ । କ୍ଷୀରପାନେ ପୂତନାର ପ୍ରାଣ କଳାଶଇ ।୮୮। କେଉଁଠାରେ ଶକଟ ତଳରେ ନନ୍ଦନନ । ଗେଲେ ଭାଙ୍ଗ ଭଙ୍ଗୁଛନ୍ତି ଜାମଳାର୍ଜ୍ଜୁନ ।୮୯। କେଉଁଠାରେ ଶ୍ରୀକୃଷ୍ଣ ମଦନ ଖେଦନ୍ତରେ । ସ୍ୱଅଧିକାର ଚରଣ ଯେ ଧରିଛନ୍ତି କରେ ।୯୦। ଗୋପାଳଙ୍କୁ ଯେଣ କାହ୍ନୁ ବନଭୋଜି କରି । କେଉଁଠାରେ ବ୍ରହ୍ମା ବତ୍ସା ନେଉଛନ୍ତି ହରି ।୯୧। ଶଙ୍ଖ ଚକ୍ର ଗଦା ପଦ୍ମ କଶ୍ମଳଇ କାହ୍ନୁ । କେଉଁଠାରେ ଶୋଇଛନ୍ତି ଚତୁର୍ଭୁଜ ହୋଇ ।୯୨। କେଉଁଠାରେ କମଳ ତୋଳନ୍ତି ନନ୍ଦସୁତ । ଚରଣେ କଠ'ହ୍ଣ ମାଡ଼ କରୁଛନ୍ତି ନାଥ ।୯୩। ବିଶ୍ୱରୂପ କାଯ୍ୟା ବଢ଼ାଇଲେ ନନ୍ଦବତ୍ସ । କୋଟି କୋଟି ବ୍ରହ୍ମାଣ୍ଡ ଗର୍ଭରେ

ପୂରିଅଛୁ । ୯୪ । ତାହା ଦେଖି ରାଧିକା ଯେ ହୋଇଲେ କାତର । ମହାଭୟ ପାଇଣ କମ୍ପିଲେ ଥରହର । ୯୫ । ବଳ ବୀର୍ଯ୍ୟ ଧଇର୍ଯ୍ୟ ଶରୀରୁଁ ଗଲା ଛୁଟି । ଚକ୍ଷୁବୁଜିଣ ପଡ଼ିଲେ ଧରଣୀରେ ଲୋଟି । ୯୬ । ବିଶ୍ୱରୂପ ଦେଖିଣ ପଡ଼ିଲେ ମହୀଭାଗେ । ହତଜ୍ଞାନ ହୋଇଲେ ଚେତନା ନାହିଁ ଅଙ୍ଗେ । ୯୭ । ତାହା ଦେଖି ଶ୍ରୀକୃଷ୍ଣଙ୍କୁ ଲାଗିଲା ଯେ ବାଧା । ମରିଯାଇ ଅଛି ପ୍ରାଣବଲ୍ଲଭୀ ମୋ ରାଧା । ୯୮ । ଏତେକ ବିଚାରି ମନେ ମନେ ଜଗବନ୍ଧୁ । ତ୍ରିଭଙ୍ଗିମା ମୂରତି ଧଇଲେ କୃପାସିନ୍ଧୁ । ୯୯ । ଅଶେଷ ବ୍ରହ୍ମାଣ୍ଡ ଧରି ହୋଇଥିଲେ ମୋଟ । ସେହିକ୍ଷଣି ସେ ରୂପ ତେଜିଲେ ବିଶ୍ୱକୂଟ । ୧୦୦ । ମୋହନମୁରଲି ଗୋଟି ଧରି ପଦ୍ମଆଖି । ରାଧିକାଙ୍କୁ ବୋଇଲେ ଗୋ ଶୁଣ ପ୍ରାଣସଖି । ୧୦୧ । ଆମ୍ଭେ ବିଶ୍ୱ ହୋଇଥିଲେ ଭୟ ଗୋ ନ ପାଅ । କେତେବେଳେ ଯାଏ ଗୋ ଅଛିଲେ ନିଦ୍ରା ଯାଅ । ୧୦୨ । ତାହା ଶୁଣି ରାଧିକା ଯେ ଉଠିଲେ ତରାସି । ମୋହନ ରୂପକୁ ଚାହିଁ ଅଳ୍ପ ଅଳ୍ପ ହସି । ୧୦୩ । ବିଶ୍ୱକାୟା ଲୁଚାଇ ବୋଲନ୍ତି ଚକ୍ରପାଣି । ଦେଖିଲାର କଥା ପାଶୋରିଲୁ ଗୋପାଳୁଣୀ । ୧୦୪ । ରାଧିକା ବୋଇଲେ ତୁମ୍ଭେ ଶୁଣ ଯୋଗନିଦ୍ରା । ଏହିକ୍ଷଣି ପ୍ରଭୁ ମୁଁ ଯେ ପାଇଥିଲି ନିଦ୍ରା । ୧୦୫ । ସ୍ୱପନେ ତ ଏମନ୍ତ ଦେଖିଲି ନନ୍ଦବଂଶି । ଅଶେଷ ବ୍ରହ୍ମାଣ୍ଡ ତୁମ୍ଭ ଗର୍ଭେ ପୂରିଅଛୁ । ୧୦୬ । ଶ୍ରୀକୃଷ୍ଣ ବୋଇଲେ ରାଧା କିଛିହିଁ ନ ଜାଣୁ । ଆମ୍ଭର କହିଲାକୁ ମିଛ ପ୍ରାୟେ ମଣୁ । ଏହିକ୍ଷଣି ଗର୍ବି ମୁଁ ଯେ ବିସ୍ତାରିବି ଯେବେ । ଗୋପାଳଙ୍କ ଯୋଗାଡ଼ି ସେ ନ ଅଣ୍ଟିବ ତେବେ । ୧୦୮ । ଏଥି ତୁମ୍ଭେ ସ୍ଥିର ହୋଇ ଥାଅ ନବବାଳୀ । କ୍ଷଣକେ ଭିତରେ ମୁଁ ଯେ ସବୁ ଦେବି ଟିଳି । ୧୦୯ । ବିଶ୍ୱମାୟା ଭିଆଇ ଅଛନ୍ତି ନରହରି । ଅଭେଦ କଥାକୁ କେ ପାରିବ ଭେଦ କରି । ୧୧୦ । ରାଧିକା ବୋଇଲେ ତୁମ୍ଭେ ଶୁଣ ଦୟାନିଧି । ସତ ପ୍ରାୟେ ମୁଁ ମଣଇ ସ୍ୱପନର ବିଧି । ୧୧୧ । ଶ୍ରୀକୃଷ୍ଣ ବୋଇଲେ ଅଗୋ ଶୁଣ ନବବାଳା ।

ବୁଝାଇ କହିଲେ ତୁ ଭାବରେ ହେଉ ଭୋଳା ।୧୧୨। ଏହି
ବିଶ୍ୱରୂପ ବ୍ରହ୍ମା ନ ପାରଇ ଦେଖି । ତାହା ତୁ ପ୍ରତକ୍ଷେ ଦେଖିଲୁ
ଗୋ ଚନ୍ଦ୍ରମୁଖୀ ।୧୧୩। ବିଶ୍ୱରୂପ ଦେଖି ତୁ ଗୋ ମୋହ ଗଲୁ
ଯେଣୁ । ସତେହେଁ ଦେଖିଲେ ତୁ ସ୍ୱପନ ପ୍ରତ୍ୟେ ମଣୁ ।୧୧୪।
ରାଧିକା ବୋଇଲେ ପ୍ରଭୁ ପ୍ରତ୍ୟହେ ଦେଖିଲି । ଏତେବଡ଼ ପ୍ରଭୁ
ବୋଲି ଏବେ ମୁଁ ଜାଣିଲି ।୧୧୫। ଏତେ ବୋଲି ମଉନ ହୋ-
ଇଲେ ଭାବବତୀ । ମନେ ମନେ ବିଚାର କରନ୍ତି ଶିରୀପତି ।୧୧୬॥
ଅନ୍ତର୍ଗତେ ବିଚାର କରନ୍ତି ଭାବଗ୍ରାହୀ । ଗୋପକ୍ରୀଡ଼ା କରିବା ଯେ
ଗୋପୀମାନ ସାଇ ।୧୧୭। ଯେଉଁ ବୃନ୍ଦାବନେ ସର୍ବ ଗୋପୀଙ୍କର
ମେଳି । ତନ୍ଦନ ଯାଏ ତହିଁ କରିବା ଯେ କେଳି ।୧୧୮। ଅଷ୍ଟ
ବେତାଳଙ୍କୁ ଆଜ୍ଞା ଦେଲେ ଭଗବାନ । ବୃନ୍ଦାବନେ ଥୁଅ ନେଇ
ଉପହାରମାନ ।୧୧୯। ପ୍ରଭୁଙ୍କର ଆଜ୍ଞା ପାଇ ଅଷ୍ଟ ଯେ ବେତାଳ ।
ଉପହାର ଦ୍ରବ୍ୟ ବୃନ୍ଦାବନେ କଲେ ଠୁଳ ॥ ରାଧିକାର କର ଧରି
ପ୍ରଭୁ ଭାବଗ୍ରାହୀ । କଦମ୍ବମୂଳରେ ପ୍ରଭୁ ବିଜେ କଲେ ଯାଇଁ ।୧୨୦।
ଅପୂର୍ବ ବିରହ ବେଣୁ ବାମକରେ ଧରି । ସ୍ଥିରକରି ବାଇଲେ
ଗୋପୀଙ୍କ ନାମ ଧରି ।୧୨୧। ଘନ ଘନ ଶୁଭୁଅଛି ମୁରଲୀର
ଧ୍ୱନି । ଶୁଣିକରି ଉଚ୍ଚାଟ ହୋଇଲେ ଗୋପାଳୁଣୀ ॥ ଜାତି କୁଳ
କୁଟୁମ୍ବ ଛାଡିଲେ ସବୁ ଲଜ୍ଜା । ଘର ବର ସମ୍ପତ୍ତେ ସକଳ କଲେ
ତେଜ୍ୟା ।୧୨୪। ଘରେ ଥାଇ ଉଚ୍ଚାଟ ହୋଇଲେ ଗୋପବାଳୀ ।
ଶ୍ରୀକୃଷ୍ଣ ସନ୍ନିଧେ ଯାଇଁ ବୃନ୍ଦାବନେ ମିଳି ।୧୨୫। ବିଶ୍ୱମାୟା
ଭିଆଇ ଅଛନ୍ତି ନନ୍ଦକାହ୍ନୁ । ସେଠାବରେ ରାଧିକାକୁ ଶୁଭୁନାହିଁ
ବେଣୁ ।୧୨୬। ଇନ୍ଦ୍ରଜାଲମାୟା କରିଛନ୍ତି ଭାବଗ୍ରାହୀ । ଗୋପୀ-
ଙ୍କର ଆସିବା ରାଧିକା ନ ଜାଣଇ ।୧୨୭। ଯୁବତୀଙ୍କି ତହିଁ ଆଜ୍ଞା
ଦେଲେ ଚକ୍ରଧର । ଯେ ଯାହା ଇଚ୍ଛାରେ ଏ ଭୋଗକୁ କୂର କର
।୧୨୮। ତନ୍ଦନ ଯାଏ ତୁମ୍ଭେ ଅଛୁଥିବ ବାଳୀ । ନାନା ଭୋଗ
ଭୁଞ୍ଜିବା କରିବା ରସକେଳି ।୧୨୯। ଗୋପୀଏ ବୋଇଲେ

ତୁମ୍ଭେ ଶୁଣ ଭଗବାନ । ତୁମ୍ଭ ଆଜ୍ଞା ପରମାଣେ ଆସିବୁଁ ବହନ ॥
ଏଥିଁ ଅନନ୍ତରେ କଥା ଶୁଣ ଭବ୍ୟ ଶ୍ରୀତ । କ୍ଷଣକେ ହୋଇଲେ
ପ୍ରଭୁ ଅନନ୍ତମୂରତି । ୧୩୧ । ଗୋଟିଏ ଗୋଟିଏ ଗୋପୀ ସମସ୍ତେ
ମିଳିଲେ । ହରିଭଙ୍ଗିମା ଗୋପୀନାଥ ଗୋପକ୍ରୀଡ଼ା କଲେ । ୧୩୨ ।
ଏହି ରୂପେ ଗୋପୀଙ୍କି ରମିଲେ ଭଗବାନ । ଏ ମାୟା ନ ଜାଣେ
ସ୍ୱଧା ଭାବଭୋଳେ ମାତ୍ର । ୧୩୩ । ଗୋପକ୍ରୀଡ଼ା ବିନୋଦ ସାରିଣ
ଚକ୍ରଧର । ଗୋପୀଙ୍କି ବୋଇଲେ ଯାଅ ଯେ ଯାହାର ପୁର । ୧୩୪ ।
ଆଜ୍ଞା ପାଇ ବାହାର ହୋଇଲେ ଗୋପବାଳୀ । ଯେ ଯାହା ମନ୍ଦି-
ରେ ଯାଇଁ ସମସ୍ତେହେଁ ମିଳି । ୧୩୫ । ସ୍ୱାଧିକାକୁ ଘେନିଣ ରସିକ
ଚୂଡ଼ାମଣି । ଚନ୍ଦ୍ରସେଣାପୁରକୁ ଆଇଲେ ଚକ୍ରପାଣି । ୧୩୬ ।
ଶ୍ରୀକୃଷ୍ଣ ମୁଖକୁ ଚାହିଁ ବୋଲେ ନବବାଳୀ । ଏବେ ତୁମ୍ଭ ମନ୍ଦିରକୁ
ଯାଅ ବନମାଳୀ ॥ ଏତେ ମାଧ୍ୟ ମାଗୁଅଛି ଶୁଣ ନନ୍ଦସୁଅ । ସୁମରିଲେ
ଦେଖିବ ତୁମ୍ଭର ଚନ୍ଦ୍ରମୁହଁ । ୧୩୮ । ଶ୍ରୀକୃଷ୍ଣ ବୋଇଲେ ସଖି
ଶୁଣ ମୋ ବଚନ । ତୋର ମୋର ଏକଆତ୍ମା ନାହିଁ ଭିନାଭିନ୍ନ ॥
ଏତେ ବୋଲି ସ୍ୱାଧିକାକୁ ଛାଡ଼ି ଜଗବନ୍ଧୁ । ନନ୍ଦମନ୍ଦିରକୁ ବିଜେ
କଲେ କୃପାସିନ୍ଧୁ । ୧୪୦ । ମାୟାକୁମରକୁ ପ୍ରଭୁ ଅନ୍ତର୍ଦ୍ଧାନ
କଲେ । ସ୍ଥିର ହୋଇ ବଳରାମ କୋଳରେ ଶୋଇଲେ । ୧୪୧ ।
ଏଥି ଅନନ୍ତରେ ଚଇତି ରଜନୀ ପାହିଲା । ଶଙ୍ଖଧ୍ୱନି ଶୁଣିଣ କୁକ୍କୁଟ
ରାବ ଦେଲା । ୧୪୨ । ସମସ୍ତ ଗୋପାଳମାନେ ଏକତ୍ରୁଣ ହୋଇ ।
ଚନ୍ଦ୍ରସେଣା ତୁଆସେ ମିଳିଲେ ସର୍ବେ ଯାଇଁ । ୧୪୩ । କବାଟ-
ଫଳଣୀ ଖଞ୍ଜା ଯାଇଅଛି ଖସି । ଶଶିମୁଖୀ ସ୍ୱାଧିକା ପଲଙ୍କେ ଅଛି
ବସି । ୧୪୪ । ତାହା ଦେଖି ଚନ୍ଦ୍ରସେଣା ଉସତ ହୋଇଲା ; ସ୍ୱାଧି-
କାକୁ ଘେନିଣ ଅନେକ ଶୋକ କଲା ॥ ସ୍ୱାଧିକା ବୋଇଲେ ତୁମ୍ଭ
ବ୍ରତର ପ୍ରସାଦେ । ଦ୍ୟୂତର ଦାଉରୁ ମୁଁ ବଞ୍ଚିଲି ଅପ୍ରମାଦେ ॥
ଶୋଇଥିଲି ଭିତରେ କବାଟମାନ ପାଡ଼ି । ଘରେ ପଶି ଭୂତ
ମୋତେ ବସିଲା ଯେ ମାଡ଼ି । ୧୪୬ । ଘୋରରଡ଼ି ଦେଇ ଯାହିଁ

ଗର୍ଜ୍ଜନ ଛଡ଼ଲ । ମହାଭୟ ପାଇ ଆମ୍ଭ ଆକାଶେ ଉଡ଼ଲ । ୪୯ ।
ହତଜ୍ଞାନ ହୋଇ ମୁଁ ପଡ଼ଲ ମୂର୍ଚ୍ଛା ଯାଇଁ । ଭିଷ୍ମାପ ମାଧବ
ଥିଲା କିଛୁ ଜାଣେ ନାହିଁ । ୧୫୦ । ଏମନେକ ବଚନ କହନ୍ତେ
ନବବାଳୀ । ନନ୍ଦସୁତ ସଙ୍ଗତେ ସମସ୍ତେ ଯାଇଁ ମିଳି ॥ ଗୋପ-
ନଗରଯାକ ଯେ ଶୁଭିଲା ଚହଳ । ସ୍ୱଧିକା ବର୍ତ୍ତିଲା ଆଜ ବାହୁଗଲା
ଗୋଳ । ୧୫୨ । ମୁହୂମୁହୀ ଜଣାଇଲା ସ୍ୱଣୀଙ୍କର ପାଶ । ସ୍ୱଧିକାଲୁ
ଦେଖିବ ବହନ ହୋଇ ଆସ । '୫୩ । ମଣ୍ଡଳ ଆକାର ହୋଇ
ଅଛନ୍ତି ଗୋପାଳ । ମଲାପ୍ରାଣୀ ଲେଉଟି ବର୍ତ୍ତିଲା ଅରବେଳ ॥
ତାହା ଶୁଣି ଯଶୋବନ୍ତୀ ଅସନ ଉପେକ୍ଷି । ଶ୍ରୀକୃଷ୍ଣ ବୋଇଲେ
ମାଏ ଆମ୍ଭେ ଯିବୁଁ ଦେଖି । ୧୫୫ । ବିପରୀତ କଥା ଅମ୍ଭେ
ଦେଖିବୁଁ ଅଦ୍ଭୁତ । କେଉଁଠାରେ ମୋ ମାଇଁଙ୍କ ଲଗିଥିଲା ଭୂତ ॥
ବଳରାମ ବୋଇଲେହେଁ ଆମ୍ଭେ ଦେଖି ଯିବୁଁ । କେଉଁଭାଇ ଆମ୍ଭେ
ଯାଇ ମାଇଁଙ୍କି ଦେଖିବୁଁ ॥ ଏତେ ବୋଲି ଶ୍ରୀକୃଷ୍ଣ ଧାଇଁଲେ
ଅଭ ଶରେ । କେଉଁଭାଇ ଧଇଲେ ଯଶୋଦା କେଉଁକରେ । ୧୫୬ ।
କଉତୁକେ ବିଜୟ ସେ କଲେ ହୃଷୀକେଶ । ସ୍ୱଧିକା ମନ୍ଦିରେ
ଯାଇଁ ହେଲେ ପରବେଶ । ୧୫୯ । ରତ୍ନଖଟ୍ଟପରେ ବସିଥିଲେ
ସୁଭ୍ରକେଶୀ । ଶ୍ରୀକୃଷ୍ଣଙ୍କୁ ଦୃଷ୍ଟିଣ ଅଳପ ଦେଲେ ହସି । '୬୦ ।
ସ୍ୱଧିକା ବୋଇଲେ ହଟ୍ଟନାଗରଙ୍କ ଶୁଭୁ । କ୍ଷଣକ ଭିତରେ ପ୍ରଭୁ
କେତେରୂପ ଧରୁ । '୬୧ । ଅନେକ ମୂରତ୍ତି କାୟା କେ ପାରିବ
ଜାଣି । ଅନନ୍ତ ପୁରୁଷ ଭୁ ଜଗତ ଶିରୋମଣି । '୬୨ । କେତେ-
ବେଳେ ଧରିଥିଲ ବିଷ୍ଣୁ ମାୟା ଗୋଟି । ଏତେବେଳେ ଧରିଅଛ
ହିରଣ୍ମୟୀମୂରତି । ୧୬୩ । ଏସନ ବୋଇଣ ସ୍ତୁତି କଲେ ନବବାଳୀ ।
ଅନ୍ତର୍ଯ୍ୟାମୀଠାକୁର ଜାଣିଲେ ମନେ ଭଲି । ୧୬୪ । ହସ ହସ
ହୋଇ ପ୍ରଭୁ ମାତାଙ୍କୁ ଛଡ଼ିଲେ । ସ୍ୱଧିକାର ଗଳା ଧରି ଲକ୍ଷିଣ
ପଡ଼ିଲେ । ୧୬୫ । କୋଳରେ ବସିଣ ପୁଚ୍ଛା କରନ୍ତି ଅନନ୍ତ ।
କେଉଁଠାରେ ମାଇଁ ତୋତେ ଲାଗିଥିଲା ଭୂତ । ୬୬ । ବିପରୀତ

କଥା ଆମ୍ଭେ ଶୁଣି ନେଉଥାଉ । ଗର୍ଭିଣୀ ଭିତରେ ଆମ୍ଭେ ଲୁଚି-
ଥିଲୁ ଯାଇଁ । ୬୭ । ସ୍ୱପ୍ନକା ବୋଇଲେ ତୁମ୍ଭେ କହୁ ଅଛ
ଯାହା । ବେଭାରେ ଡରୁଥା ବୋଲ ଜାଣଇଁ ମୁଁ ତାହା । ୬୮ ।
ଏହା ଶୁଣି ସ୍ୱଧାଲୁ ବୋଲନ୍ତି ପଦ୍ମମୁଖୀ । ପଲଙ୍କରୁ ଉଠି ମାଇଁ
ମୋତେ କର କାଖ । ୬୯ । ତୁ ଯେବେ ବର୍ତ୍ତିଲୁ ଗୋ ସବୁହିଁ
ହେଲ ଭଲ । ଘରେ ସ୍ୱର୍ପ୍ପା ବସିଥିବା ବାହାରକୁ ଚଲ । ୭୦ ।
ତାହା ଶୁଣି ବହନ ଉଠିଲେ ନବବାଳୀ । ଶ୍ରୀକୃଷ୍ଣଙ୍କୁ କାଖ କରି
ବାହାରକୁ ଚଳି । ୭୧ । ସମସ୍ତେହିଁ ଦେଖିଲେ ଶ୍ରୀକୃଷ୍ଣ ସ୍ୱଧା-
ରୂପ । ଛୁଟିଗଲା କୋଟିଏ ଜନ୍ମର ମହାପାପ । ୭୨ । ଚଳିଲେ
ଗୋପାଳ ଯୋଏ ଯେ ଯାହାର ଘର । ଚନ୍ଦ୍ରସେଣା ପାଛେଟି ଅଇଲା
ଝଣ୍ଡେଦୂର । ୭୩ । ସରିଲା ଏ ଭୂତକେଳି ଦ୍ୱିପଦୀତ ସନ୍ଧ ।
ଶ୍ରୀକୃଷ୍ଣ ଚରଣ ତଳେ ଦୀନକୃଷ୍ଣ ବନ୍ଧ । ୭୪ । ହିପୁରେ ପ୍ରସିଦ୍ଧ
ଅଛି ଯାହାଙ୍କ ଚରଣ । ସେହି ପଦ୍ମପାଦତଳେ ପଶିଲି ଶରଣ । ୭୫ ।

ସମାପ୍ତ



